# କୁମାର-ନୀତିଶତକ



# କୁମାର ନୀତିଶତକ

ଲେଖିକା—ରାଜମଣି ମିଶ୍ର

(ସଂପାଦକା—ଧରାକୋଟ ନାରାୟଣପୁର
ପ୍ରଗତି ମହିଳା ସମିତି)



ପ୍ରଥମ ସଂସ୍କରଣ—୧୯୬୪

ପ୍ରକାଶକ
ପ୍ରସାଦ ପ୍ରକାଶ ପ୍ରତିଷ୍ଠାନ
ବ୍ରହ୍ମପୁର (ଗଞ୍ଜାମ)

ମୂଲ୍ୟ—ଟ ୦-୩୭ ପଇସା ମାତ୍ର

# ଉତ୍ସର୍ଗ

—o—

ମାଇଁ !

ମୁଁ ମୋର ଜୀବନକୁ ଯେତେ ଭଲ ପାଏ ତାହାଠାରୁ ବେଶୀ ଭଲ ପାଏ ତୁମକୁ । ତୁମର ଦୟା, ବ୍ୟବହାର ଓ ସ୍ନେହ ଏ ଜୀବନରେ ଭୁଲି ପାରିବି ନାହିଁ । ତୁମେ ଚିରଦିନ ପାଇଁ ଚାଲିଗଲ; ମୁଁ ଗାଁ ଛାଡ଼ି କୁଶଡ଼ିହାରେ ଲାଗି ରହିଲି ଯାହା ଦୁଃଖମାସ କେବଳ ତୁମର ଦେହ ଭଲ ଥିବା ଖବର ପାଇବ ବୋଲି ।

ମାଇଁ, ତୁମର ଆଶୀର୍ବାଦ ଓ ତୁମର ସନ୍ତୁଷ୍ଟି ହିଁ ମୋର କାମ୍ୟ । ଆଜି ମୋର ଆନ୍ତରିକ ଭକ୍ତିର ନିଦର୍ଶନ ସ୍ୱରୂପ **କୁମାର-ନୀତିଶତକ** ତୁମର ଚରଣରେ ଅର୍ପଣ କରୁଛି ।

ତୁମର
ଅଭାଗିନୀ ଝିଅ
ରାଜ

# କୁମାର ନୀତିଶତକ

୦

ଅବ୍ଜ କୁମାର, ଶଙ୍କର ପଦ୍ମାକ୍ଷ ଦେଶ୍ୱର
ସୁମୂର୍ତ୍ତି ଦର୍ଶନେ ଯାଚି ଦେଇଥାନ୍ତି ବର ।
ସନ୍ତାନ ! ପବିତ୍ର ଭାବେ ନମି ସେ ପଦ୍ମରେ
କୀର୍ତ୍ତିଶାଳୀ ହୁଅ ଭବେ ସୁଗୁଣ ସଂଘରେ ।୧।

କହନ୍ତି ମୋ ମାଉ ବାବୁ ପାଳିଲେ ଆଦରେ,
ଭଲରେ ହୋଇବୁ ଗଣା ଜାଣିଥା ଲୋକରେ ।
ଲଭିବୁ ଆରୋଗ୍ୟ, ଯଶ, ଧନ, ମାନ, ଜ୍ଞାନ
ମନେ ରଖ, ଈଶ୍ୱରପଦେ ସଦା ଦେବୁ ଧ୍ୟାନ ।୨।

ଜନ୍ମ ଦେଲେ ମାତା, ପିତା ପାଳିଲେ ଆଦରେ
ପ୍ରତ୍ୟକ୍ଷ ଦେବତା ସମ ମଣ ଯେ ଦୁଇରେ ।
ସନ୍ତାନ କର୍ତ୍ତବ୍ୟ ତାଙ୍କ ପ୍ରତି ଗୁରୁତର
ପାଳିବୁ ତା ପବିତ୍ରରେ ! ଚିତ୍ତେ ଦୃଢ଼ ଧର ।୩।

ପ୍ରଣମିଲେ ମାତା ପିତା ଚରଣେ ଆଦରେ,
ଆଶୀଷେ ତାଙ୍କର ବଡ଼ ହୁଅନ୍ତି ଲୋକରେ ।
ଜନନୀ ଜନକ ସେବା କରେ ଯେ କୁମର,
ବଡ଼ ହେଲେ ଦେଶେ ତାର ବଢ଼ଇ ଆଦର ।୪।

ଅଟନ୍ତି ବାବୁ ଜନକ ସ୍ୱର୍ଗ, ଧର୍ମ ତପ,
ସୁପୁତ୍ର ସେ ପିତୃ ତୁଷ୍ଟେ ତୋଷ ସଂକଳ୍ପ ।
ନାହାନ୍ତି ତୋ ପିତା ବୋଲି ସେ ଭାବୁ ନ ଧର
ମାତ୍ର ସେ ସ୍ମୃତି ତୋ ହୃଦେ ହୋଇବ ଅମର ।୫।

ପିତାଙ୍କ ହୃଦ ସଂତାନ ମଙ୍ଗଳର ଘର,
ପିତୃ ବାକ୍ୟ ନ ଲଂଘେ ଯେ ଉତ୍ତମ କୁମର ।
ଯଦି ପିତା କରେ ପୁତ୍ର ଅଶୁଭ କାମନା,
ଜାଣିରଖ ବାବୁ ! ତାହା ବିଧି ବିଡ଼ମ୍ବନା ।୬।

ଦୁଷ୍ଟ ବୋଲି ଲୋକେ ଖ୍ୟାତି ହୋଇଲେ କୁମର,
ଅପନିନ୍ଦା ଶୁଣିଥାନ୍ତି ଜନନୀ ପିଅର ।
ଯେଉଁ ପୁଅ ଯୋଗେ ଘର ନିନ୍ଦା ଉପୁଜଇ,
ଜାଣିଥା ସୁବନ୍ଧୁ ! ତାରେ କିଛି କାର୍ଯ୍ୟ ନାହିଁ ।୭।

ନଚିକେତା କଥା ଏବେ ଘୋଷୁଛି ପୁରାଣ
ପିତା ବାକ୍ୟେ ଅକାତରେ ଦେଇଥିଲା ପ୍ରାଣ ।
ଡ଼ରିଗଲା ଯମ ତାର ପିତୃଭକ୍ତି ଦେଖି,
ଫେରସ୍ତ ଦେଲା ତା ଜୀବ ନ ପାରିଲା ରଖି ।୮।

କୋଟିଏ ନକ୍ଷତ୍ରେ ନାଶ ନହୁଏ ଅନ୍ଧାର,
ନାଶଯାଏ ତମ ଉଦେ ହେଲେ କଳାକର ।

ସାହସ୍ର, ଓଡ଼ିଆ ସ୍କୁଲର କିବା ପ୍ରୟୋଜନ,
ବୀର ପୁଣ୍ୟ ଜନମର ଜୀବ ଅଟେ ଧନ୍ୟ ।୯।

ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଯାଙ୍କ ସ୍ତୁତି ସଦା,
ପାଠକ ! ଏ ଅଟେ ବେଦ ବିହିତ ବଚନ ।
ଗୁରୁ ଭକ୍ତି ଫଳେ ତୁମେ ବିଜ୍ଞ ହୁଅ ଭବେ,
ଦାଶ ଉଠୁ ତୋ ଜନମ ହୃଦୟୁ ଗୌରବେ ।୧୦।

ଶୁଣିଛୁତ ଉଦ୍ଦାଳକ ଗୁରୁ ସେବା ଫଳେ,
ସେ କାଳ ଋଷିଙ୍କୁ ବଳିଥିଲେ ବିଦ୍ୟାବଳେ ।
ଗୁରୁକୃପା ଫଳେ ବାବୁ ବିଦ୍ୟାଲଭେ ନର,
ଏ କଥାରେ ତିଳେ ମନେ ସଂଶୟ ନଧର ।୧୧।

ପଢ଼ାବେଳେ ଛାତ୍ରଙ୍କର ବିଦ୍ୟାଳୟ ଘର
ମଣିବୁ ଗୁରୁଙ୍କୁ ବାବୁ ଯେସନେ ପିଅର ।
ଯା କହିବେ ତା କରିବୁ ନ କାଟିବୁ ଆନ,
ତା ଫଳେ ଲଭିବୁ ବାବୁ ଜୀବନେ ସମ୍ମାନ ।୧୨।

ନିଜର ଅପମାନକୁ ମୃତ୍ୟୁବୋଲି କହି,
ଯେ ହିତ କହିବ ବାବୁ ଗୁରୁ ଅଟେ ସେହି ।
ଗୁରୁ ଉପଦେଶ ସହ ବିବେକ ଶାସନା,
ପାଳିଲେ ନିଜନ ହୁଏ ମରଣ ଯାତନା ।୧୩।

ଯାହାଙ୍କ ସର୍ଜନା ଏହି ବିଶ୍ୱ, ଚରାଚର,
ଅଟେ ଯାହାଙ୍କ ଆକାର ଅଗମ୍ୟ ମନର
ରବି, ଶଶି ତାରା ଆଦି ଯାହାଙ୍କ ବିଧାନ,
ମନେ ରଖି ଦେବୁ ନିତ୍ୟ ସେ ପାଦରେ ଧ୍ୟାନ ।୪।

ଆଳସ୍ୟ ଅଟଇ ବାପୁ ମନୁଷ୍ୟର ଅରି,
ବିନାଶେ କରମ ସବୁ ଆୟୁ ହେତୁ କରି ।
ଆଳସ୍ୟ ପାଶେ ନ ଆସେ କାର୍ଯ୍ୟେଥିଲେ ମନ,
ସଦା କାର୍ଯ୍ୟ ରତ ହୁଅ, ଏ ଶିଷ୍ଟ ବଚନ ।୫।

ଅରୁଣ ଉଦୟୁ ଆଗୁଁ ତେଜିବୁ ଶୟନ,
ପବନ ! ପାବନ ମନେ ବିଭୁ କର ଧ୍ୟାନ
ଧୋଇବୁ ନିର୍ମଳ ଜଳେ ଭଲେ ମୁଖ ଦନ୍ତ—
ମନେରଖି ନିତ୍ୟବିଧି, ଏ ପଣ୍ଡିତ ମତ ।୬।

ଆହାର କରିବୁ ବାପୁ ଯାହା ଥିବ ଘରେ,
ସୁସ୍ଥିର ମନେ ପଢ଼ିବୁ ବସି ଏକାନ୍ତରେ
ଏ ବୟସେ ଭଲ ଶିକ୍ଷା ନ ପାଇବୁ ଯେବେ,
ମନେରଖ ତୋ ଜୀବନ ଅକାରଣ ଭବେ ।୭।

ଶିକ୍ଷାହୀନ ନର ହୁଏ ପଶୁ ମଧ୍ୟେ ଗଣା.
କିସ୍ୱାଦ ତହୁଁ ଯେବେ ବ୍ୟଞ୍ଜନ ଅଲଣା

କଲେଡ଼ା ସୌନ୍ଦର୍ଯ୍ୟ, ଧନ, ବସନ ଭୂଷଣ,
ବିଦ୍ୟା ନ ଥିଲେ ବାବୁରେ ସବୁ ଅକାରଣ ।୧୮।

ଶିଶୁର ଶିକ୍ଷା ଆରମ୍ଭ ହୋଇଥାଏ ଘରେ,
ନିର୍ଭର କରେ ତହିଁ ମାତା ବ୍ୟବହାରେ,
ଯେ ଘର ଘରଣୀ ବାବୁ ନୁହନ୍ତି ଚେତାଳ
ସେ ଘର ପିଲାଏ ଖୋଜୁଥାନ୍ତି କଥା ଆଳ ।୧୯।

ସବୁ ସିନା ସରିଯାଏ ବିଦ୍ୟା ନସରଇ
ବିତରଣ କରୁଥିଲେ ଅଧିକେ ବଢ଼ଇ ।
ବିଦ୍ୟାଧନ ଅର୍ଜନେ ନ ହେବୁ ବିମୁଖ,
ନହିବ ବାବୁରେ ତହିଁ ଜୀବନର ସୁଖ ।୨୦।

କିଛି ହେବ ନ ପଢ଼ି କେତେ ଗ୍ରନ୍ଥ ଥିଲେ ଘରେ,
ପରହାତେ ଥିବା ଧନ ନ ଆସେ କାମରେ ।
ଏ ଦୁଇ ଉପରେ କେବେ ନ କର ନିର୍ଭର,
ଅଟଇ ଏ ଉପଦେଶ ବିଜ୍ଞ ଋଷିଙ୍କର ।୨୧।

ପଢ଼ିବୁ, ପଢ଼ିବା ବେଳେ ଖେଳବେଳେ ଖେଳ,
ଶିକ୍ଷାଦେବୁ ଶିଶୁଗଣେ ଯେବେ ହେବ ବେଳ ।
ଉନ୍ନତ ହୁଅଇ ଦେଶ ଶିକ୍ଷା ପ୍ରଚାରଣେ
ନଷ୍ଟ ନ କର ସମୟ ବାବୁ ଅକାରଣେ ।୨୨।

ବହୁ ଖୁବି ନାନ୍ତ ବାବୁ କହୁଥିବୁ କଥା,
ଯା କହିବୁ କରିବୁ ତା ସତତେ ସର୍ବଥା ।
ନ ଥାଏ ଶୃଙ୍ଖଳା ଯାର କାରବେ ବଚନେ,
ଅବିଶ୍ୱାସୀ ବୋଲି ତାକୁ କହୁଥାନ୍ତି ଜନେ ।୨୩।

ବ୍ୟାୟାମ ଅଟଇ ବାବୁ ସ୍ୱାସ୍ଥ୍ୟ ବିଧାୟକ,
ଅଟେ ପୁଣି ତାହା ଚିତ୍ତ ସଂତୁଷ୍ଟି କାରକ ।
ନିୟମିତେ ବାବୁ ଯିଏ କରୁତ ବ୍ୟାୟାମ
ରୋଗୀ ତାଲିକାରୁ ତାର କଟିଯାଏ ନାମ ।୨୪।

ସତେ ଜୁତାପଟା ବାବୁ ରଖିବୁ ନିର୍ମଳ,
ଜାଣିଥା ଏ ନୀତି ଅଟେ ସ୍ୱାସ୍ଥ୍ୟର ସଂବଳ ।
ସ୍ୱାସ୍ଥ୍ୟହୀନ ଯିଏ ତା'ର ଜୀବନ ଅସାର,
ନ ପାରେ ସେ କରି କିଛି କାର ଉପକାର ।୨୫।

କଦାପି ନହୁଅ ମଳ ପୁରୀଷ ରୋଧକ,
ଆଚରିବୁ ଯଥାକାଳେ ଦୃଢ଼ ମନେ ରଖ ।
ଅନ୍ୟଥା ଭୋଗିବୁ ରୋଗ ବଢ଼ିବ କଷଣ,
ଚିର ରୋଗୀ ଯିଏ ତାର ଜନ୍ମ ଅକାରଣ ।୨୬।

ସକାଳେ ସନ୍ଧ୍ୟାରେ ସ୍ନାନ କଲେ ଦୁଇଥର,
ନିର୍ମଳ ହୁଅଇ ଧନ ! ବାହାର ଭିତର ।

ପ୍ରଫୁଲ୍ଲ ହୁଅଇ ଚିତ୍ତ କାର୍ଯ୍ୟକାଳେ ମନ,
ପାଳିବୁ ଯତନେ ବାବୁ ଏ ହିତ ବଚନ ।୨୭।

ମଉଜେ ବସି ବାବୁରେ କରିବୁ ଆହାର,
ଖାଦ୍ୟ ମଝିରେ ନକର ଜଳ ବ୍ୟବହାର ।
ଭୋଜନ ଶେଷେ ଯଥେଷ୍ଟ ପାଣି ପିଅ ନାହିଁ,
ସ୍ୱାସ୍ଥ୍ୟ ବୃଦ୍ଧି ହେବ ବୁଧେ କହିଛନ୍ତି ଜାଣି ।୨୮।

ପଚା ସଢ଼ା ବାସି ଖାଦ୍ୟ ସ୍ୱାସ୍ଥ୍ୟ ନାଶକର,
ସଦ୍ୟରନ୍ଧା ଖାଦ୍ୟ ବାବୁ ଅଟେ ରୁଚିକର ।
ଭୋଜନେ କଦଳୀପତ୍ର ଅଟେ ପ୍ରଶଂସିତ,
ମିଳେ ଯଦି ବ୍ୟବହାରେ ଆଣିବା ଉଚିତ ।୨୯।

ସ୍ୱାସ୍ଥ୍ୟ ଅନୁକୂଳ ଶସ୍ୟ ହେଲେ ପୁରାତନ
ରୁଚିକର ଯେଣୁ ତାହା ନୁହଇ ନୂତନ ।
ଛ ମାସ ନିମନ୍ତେ ଶସ୍ୟ ସାଇତିବୁ ଘରେ,
ଅଧିକ ଥିଲେ ବିକ୍ରୟ କରି ଦେବୁ ପରେ ।୩୦।

ମଶା ମାଛିଏ ଅଟନ୍ତି ସବୁ ରୋଗ ଘର,
ମଶାବାରଣ ଶଯ୍ୟନେ କର ବ୍ୟବହାର ।
ନାଳ, ପାଇଖାନା ସଫା ରହିଥିବ ଯେବେ,
ନ ବସିବେ ମାଛି ରୋଗ ନ ଆସିବ କେବେ ।୩୧।

ବ୍ୟବହାର ଯୋଗ୍ୟ ପାନ ମୁଖ ଶୁଦ୍ଧି ପାଇଁ,
ମାତ୍ର ଛହିଁ ଧୂଆଁ ପତ୍ର ଯୋଡ଼ା ହେବ ନାହିଁ ।
ବିଷ ଅଛୁ ଧୂଆଁ ପତ୍ରେ ରଖିବୁ ମନରେ,
ଅଜାଣତେ ଶକ୍ତି କ୍ଷୟ କରେ ତା କ୍ରମରେ ।୩୨।

ଦକ୍ଷିଣ ମୁଖରେ କେବେ ନକର ଆହାର,
ଶୟନ କାଳେ ଉତ୍ତରେ ନ ରଖିବୁ ଶିର
ପୂର୍ବମୁଖ ହୋଇ ଦାନ୍ତ ନଘଷିବୁ କେବେ,
ଗୁରୁତର ନୁହେ, ଭଲ ପାଳିପାରୁ ଯେବେ ।୩୩।

ପୋଷାକ ନିମନ୍ତେ କେବେ ନ କରିବୁ ଅଳି,
ଯା ପାଇବୁ ମଣିବୁରେ ତାହା ତୋହ ଭଳି ।
ବେଶ ଭଲ ହେଲେ ମିଳି ନପାଏ ଆଦର,
ଆଦର ସର୍ବଦା ସବୁ ସ୍ଥାନେ ସୁ ଗୁଣର ।୩୪।

ସତ ଠାରୁ ବଡ଼ ହୋଇ ନାହିଁ ଆଉ କିଛି,
ମିଥ୍ୟା ବାଦୀକୁ ସରବେ କରନ୍ତିରେ ତୁଚ୍ଛ ।
ସତ୍ୟେ ଆଦରିଲେ ମିଳେ ବିପଦରୁ ପାର,
ମନେ ରଖ ମବନ୍ତରେ! ସତ୍ୟ ଏକା ସାର ।୩୫।

ସତ୍ୟ ରକ୍ଷା ପାଇଁ ରାମଚନ୍ଦ୍ର ଗଲେ ବନ,
ନିର୍ଭୟେ ଦେଲା ଜୀବନ କର୍ଣ୍ଣର ନନ୍ଦନ ।

ସତ୍ୟେ ରବି ଶଶୀବାକୁ ହୋନ୍ତି ଆଜ୍ଞାଧୀନ,
ସତ୍ୟେ ଚତୁର୍ବର୍ଗ ଲଭ, ଏକଥା ନିଶ୍ଚିତ ।୩୬।

ସତ୍ୟେ ଆଶ୍ରାକର୍ଣ୍ଣ ଗାନ୍ଧି ଜଗତେ ଅମଳ
ବୁଝିବୁ ଏଥିରୁ ବାବୁ ମହିମା ସତ୍ୟର ।
ତେଜିଲ ତୁ ସତ୍ୟ ପଥରୁ ଟଳାଇଲେ ଚାତୁର୍ଯ୍ୟ,
ସବୁବେଳେ ଶମଦରୁ ତାଡ଼ିବେ ଅତ୍ୟନ୍ତ ।୩୭।

ହା ସା ଦ୍ରୋଣ ଅତିସ ସଦଭାବ ଗଲେ ନାଶ,
ଗୁଣିଗଣ ସହିବାକେ ସତ୍ୟର ପ୍ରକାଶ ।
ଲୋପ ହୋଇଥାଏ ହିଂସା ତାକୁ ସତ୍ୟ ବଳେ,
ସତ୍ୟର ମହିମା ଗାନ୍ଧୀ ନୁହେଁ କାଳେ କାଳେ ।୩୮।

ନ୍ୟାୟରେ କହିବ ସତ ଏ ଶିକ୍ଷା ବଚନ,
ସତ୍ୟ କହିବାକୁ କେବେ ଡରର ନନ୍ଦନ ।
ପକ୍ଷଧର ହେଉ ଲୋକ ନ୍ୟାୟାନ୍ୟାୟ ଦରେ,
ଅବଶ୍ୟ ତାହାର ନିନ୍ଦା ହୁଅଇ ଲୋକରେ ।୩୯।

ଧରମରେ ସାର ବାବୁ ପର ଉପକାର,
ଧନ୍ୟ ସେହି, ପରପାଇଁ କାନ୍ଦେ ଯା ଅନ୍ତର ।
ପର ପାଇଁ ବାବୁ ଯାର ନ କାନ୍ଦେ ପରାଣି,
ଜପ, ତପ, ଦାନ, ଧ୍ୟାନ ତାର ଅକାରଣି ।୪୦।

ଟେକାଏ ଫିଙ୍ଗିଲେ ନଷ୍ଟେ ବାଳକ ପଥର,
ମନେ ରଖ ବାବୁ ଏହି ନୀତି ଜଗତର ।
କାୟ ମନ ବଚନରେ ପର ଅପକାର,
ନ କଲେ ନଥିବ କେବେ ଭୟ ଅପଦର ।୪୧।

ପରନିନ୍ଦା ନ କରିବ ନ ଦେଖିବ ଦୋଷ,
ଗୁଣଥିଲେ କର ଶିକ୍ଷା ବଢ଼ିବ ପୌରୁଷ ।
ଯେହୁ ସବୁବେଳେ ପର ଛିଦ୍ର ବସେ ବାଢ଼ି,
ଜାଣିଥା ମନୁଷ୍ୟ ମଧ୍ୟେ ସେ ଅଟେ ଅଗାଢ଼ି ।୪୨।

ଗୃହସ୍ଥ ଆଶ୍ରମ ଗୃଣ ଆଶ୍ରମରେ ସାର,
ଲଭେ ଦେଶ ଦଶ ଏଥୁ ବହୁତ ଉପକାର ।
ବିଶେଷ ଆସକ୍ତି କିନ୍ତୁ ନ ରଖିବ ତହିଁ,
ଜାଣିଥା ତା' ଫଳେ ପରେ ନିନ୍ଦା ଉପୁଜଇ ।୪୩।

ମନେ ନପକାଅ କେବେ କାର ଅପକାର,
ପାଶୋରି ନ ଦେବୁ କିନ୍ତୁ ପର ଉପକାର ।
ବଡ଼ ଲୋକ ହେବୁ ସର୍ବେ ସମ ମଣୁ ଯେବେ।
ଲଭିବୁ ସୁଖ୍ୟାତି ନିନ୍ଦା କେହି ନ କରିବେ ।୪୪।

ଜନନୀ ଜନମ ଭୂଇଁ ଭଲେ ରଖ ମନେ,
ବିଶ୍ୱାସ ନ ଯିବୁ କେବେ ଦେଶଦ୍ରୋହୀ ଜନେ ।

ଦେଶ ହିତେ ଜନସଂଯୋଗ ହୁଏ ଧନ ଯାଉ,
ଧନ୍ୟ ସେ, ଧନ୍ୟ ଏ ଭବେ ଜନମ ତାହାର ।୪୫।

ଦେଶ ଶତ୍ରୁକୁ ମଣିବୁ ନିଜ ଅରି ସମ,
ନ ମାଡ଼ିବୁ ପାଖ ତାର କର ଦୃଢ଼ପଣ ।
ଦେଶ ରକ୍ଷା ପାଇଁ ବାବୁ ଲୋଡ଼ା ହେବ ଯେବେ,
ଧନ ଜନ ଦାନେ ଲୋଭ ନ କରିବୁ କେବେ ।୪୬।

ଘରେ ସୁନା ଥାଇଥିଲେ କାର୍ଯ୍ୟ କାହିଁ ନାହିଁ,
ସୁନା ଦରଶନେ କ୍ଷୁଧା ନଯାଏ ପଳାଇ ।
ବିଗ୍ଭରିବୁ ବାବୁ ତାହା ସଂକଟର ଘର,
ଖଟାଅ ରହିଁରେ, ଯହିଁ କଲ୍ୟାଣ ଦେଶର ।୪୭।

ସମୃଦ୍ଧ ହୁଅଇ ଦେଶ ପରିଶ୍ରମ ବଳେ,
ପରିଶ୍ରମ ବଶୁ ଧରା ଉପରେ ଶସ୍ୟ ଫଳେ ।
ଅଧିକ ଶସ୍ୟ ଉତ୍ପନ୍ନ ହୋଇଲେ ସଂଭବ,
ଜଗତେ ବଢ଼ିବ ତୋର ଦେଶର ଗଉରବ ।୪୮।

ପବିତ୍ର ଭାରତ ବର୍ଷ ତୋ ଜନମ ଭୂଇଁ,
ତୋ କର୍ତ୍ତବ୍ୟ ରକ୍ଷାକର ବାବୁ ତାହା ପାଇଁ ।
ମା ଗୌରବ ରକ୍ଷାଲାଗି ଶିର ଗଲେ ଯାଉ,
ଯୁଗେ ଯୁଗେ ଜନ୍ମଭୂମି ଟେକ ରହିଥାଉ ।୪୯।

ତୋତ ନରଖିବୁ ଟଙ୍କା ସୁନାରେ କୁମର,
ସଞ୍ଚୟ ନିମନ୍ତେ ନାରୁପଦ ଗଚ୍ଛାଘର (ବ୍ୟାଙ୍କ) ।
ପୋତା ଧନ ମଣୁ ପରେ ମାଟିରେ ରହଇ,
କାହାର ଲୋଡ଼ାରେ ବାବୁ କେବେ ନ ଆସଇ ।୫୦।

ସରବେ ଅଟନ୍ତି ଏକ ଈଶ୍ୱର ସନ୍ତାନ,
ମନୁଷ୍ୟ ମଧ୍ୟରେ ବାବୁ ନାହିଁ ବଡ଼ ସାନ ।
ମାନବ ସମାଜେ ଦେଖେ ଯେଉଁ ଭେଦ ଭାବେ,
ସଭୁ ଅଭିଶାପ ଲଭି ପଡ଼ି ସେ ଅଭାବେ ।୫୧।

କରିବ. କରାଉ ଥିବ ଚିନ୍ତା ଦେଶ ହିତ,
ପଢ଼ିବ, ପଢ଼ାଉଥିବ ହେଲେ ସେ କହିଛ ।
ଉପାର୍ଜନ, ସ୍ୱଳ୍ପ ଅଂଶ ଦେଶପାଇଁ ଦାନ,
ଷଟକର୍ମ ତୁମେ ବେଦେ ହୋଇଛି ବର୍ଣ୍ଣନ ।୫୨।

ଶାସକ ପଣରେ ବାବୁ ଲୋଡ଼ା ହେବୁ ଯେବେ,
ନ ମାତବୁ ପ୍ରୀୟା ପ୍ରୀତ ତୋଷଣରେ କେବେ ।
ଲୋକଙ୍କ ମଙ୍ଗଳ ଯାହା କରିବୁ ଗ୍ରହଣ,
ଅନ୍ୟଥା କହିବେ ଲୋକେ ତୋତେ ଦୁରାଚାରୀ ।୫୩।

ଅଛନ୍ତି ଜଗତେ ବାକ୍ୟ-ବୀର କର୍ମ-ବୀର,
ରହିଛି ସଦା ପ୍ରତିଷ୍ଠା ଲୋକେ ଚିରସ୍ଥିର ।

କହ କିବା ଲାଭ ଯଦ କାର୍ଯ୍ୟ ନାହିଁ ମନ,
କହ ନ କଲେ କି କେବେ ମିଳିବ ସମ୍ମାନ ? ।୫୪।

ଅନ୍ୟ ମନେ କଷ୍ଟ ଦେଇ ନ ଆଣିବୁ ଧନ,
ନୁହେ ତୋର ଯାହା ଇଛିଁ କିବା ପ୍ରୟୋଜନ ।
ସେପରି ଧନରେ କେବେ ନୁହେ ଉପକାର,
ଜାଣିଥା ବାବୁରେ ପରେ ନିନ୍ଦା ହୁଏ ସାର ।୫୫।

ନ ପାଆନ୍ତୁ କଷ୍ଟ କାହୁ କେହି ତୋ କରମେ,
ସନ୍ତୁଷ୍ଟ କର ସମସ୍ତେ ସୁମିଷ୍ଟ ବଚନେ ।
ନ ବସିବୁ ରଖି କେବେ କଳ ଅଭିମାନ,
ମାନିବୁ ସର୍ବଦା ଗୁରୁଜନଙ୍କ ବଚନ ।୫୬।

ଯତ୍ନ କଲେ ରତ୍ନ ମିଳେ ଶୁଣିଛୁ ଏ କଥା,
ଦେଶ ଦଶ ହିତେ କର ପ୍ରଯତ୍ନ ସର୍ବଥା ।
ଲଭିବୁ ଆତ୍ମ ସନ୍ତୁଷ୍ଟି ବୁଦ୍ଧି ହେବ ସ୍ଥିର,
ଇହପରେ କୀର୍ତ୍ତି ତୋର ହୋଇବ ସୁଚିର ।୫୭।

ଜନମ ଲଭଇ ନର ମୃତ୍ୟୁ ସଙ୍ଗେ ଧରି,
ରହିଛୁ ମରଣ ଛାଇ ସମ ଅନୁସରି ।
ଝାମ୍ପି ନେବ କେଉଁବେ କାହିରେ ନୁହଇ ଗୋଚର,
ଦୀର୍ଘସୂତ୍ରୀ ନ ହୁଅଇ ତେଣୁ ବଳ୍ଳନର ।୫୮।

ଏଇ ଲକ୍ଷ୍ଣ ସମ ମଣ ଅନ୍ୟ ଶିଶୁଗଣେ,
ବିମୁଖ ନ ହେବ ବାବୁ ତୋ ଉପରେ ଜଣେ ।
ଯାହା ହେବୁ ସେବକ ତାଙ୍କ ବିପଦେ ଆପଦେ,
ତୋତେ ନିନ୍ଦା କରି କିଏ ନ କହିବେ ପଦେ ।୫୯।

ବିଦ୍ୟା, ବପୁ, ବାକ, ବସ୍ତ୍ର, ବିଭବ ଏ ପାଞ୍ଚ,
ସମାନ ଥିଲେ ସମ୍ମାନେ ନ ଆସିବ ଆଞ୍ଚ ।
ଲଭିବୁ ଗୌରବ ଧର୍ମ ହେବୁ ଯଶ ଧନେ,
ଖୋଜିଲେ ପାଇବୁ ନାହିଁ ତୋ ନିନ୍ଦୁକ ଜଣେ ।୬୦।

ଫୁଲ ଫୁଟି ଝଡ଼ୁ ଓ ବାସେ ମନକୁ ଏ ମୋହ,
ଶିମ୍ବଳୀ ପାଦପେ କେବେ ନ ପଶୁରେ କେହ ।
ମନେରଖ ସବୁଠାରେ ନିନ୍ଦା ଅଗୁଣର,
ସବୁ ଦେଶେ, ସବୁ କାଳେ ଗୁଣର ଆଦର ।୬୧।

ନ କହିବୁ ଉଚ୍ଚେ ନ କରିବୁ ଅଟ୍ଟହାସ,
ନ ମିଳେ କଦାପି ବାବୁ ତହିଁରୁ ପୌରୁଷ ।
ମନେରଖ ଗୁରୁଜନେ ନ କରିବୁ ଥଟ୍ଟା,
ପାପରେ ଗଣା ତା ତହୁଁ ଥୁଆ ହଟହଟା ।୬୨।

ଅବରଣେ ମଧ୍ୟ ପାତ୍ର ନ ହେବୁ କୁମର,
ଯେଥିରୁ ନିନ୍ଦା କେବଳ ହୋଇଥାଏ ସାର ।

ଅଯାଚତେ ମତାମତ ଦିଏ ଯେଉଁ ନର,
ଅବିବେକୀ ବୋଲି ତାକୁ କହଇ ସଂସାର ।୬୩।

କିଏ ଶତ୍ରୁ, କିଏ ମିତ୍ର ନ ଯାଏରେ ଜଣା,
ଜାଣିବୁ ଥରେ ତୁ କଲେ ଭଲେ ବିଚାରଣା ।
ମିଳେ ବିପଦେ ଉତ୍ତମ ମିତ୍ର ପରିଚୟ,
ପ୍ରାଣ ଧନମଧ୍ୟେ ହୋଇଥାଏ ସେ ସହାୟ ।୬୪।

ସେମର ସଙ୍ଗୀକୁ ବାବୁ ପାଖୁ ନ ଛାଡ଼ିବୁ,
ଛାଡ଼ିଲେ ନିଶ୍ଚୟ ଧର୍ମେ ଦୋରେହା ହୋଇବୁ ।
ସୁଭାଗ୍ୟେ ଉତ୍ତମ ସଙ୍ଗୀ ହୋଇଥାଏ ଲଭ,
ତା ପ୍ରତି ବିଶ୍ୱାସ ତୋର ନ ହେଉ ଅଳ୍ପକ ।୬୫।

ତୋମନ କଥାରେ ରତ ଥିଲେ ଦୁଷ୍ଟଜଣ,
ନ ଯିବୁ ସେଠାକୁ ମନେ ରଖିବୁ ନନ୍ଦନ ।
ଗଲେ ମାନହାନୀ ହେବ ଏକଥା ନିଶ୍ଚୟ,
ଶେଷେ ଉପୁଜଇ ତହୁଁ ଭୀଷଣ କଳହ ।୬୬।

ସଭିଙ୍କୁ ତୋଷିବୁ ବାବୁ ନମ୍ର ବଚନେ,
ନ ଧର କଦାପି କ୍ରୋଧ ହୃଦମଧ୍ୟେ ସ ନେ ।
ଧର୍ମ ଧ୍ୱଂସ କରେ କ୍ରୋଧ, ଦୃଢ଼େ ହୃଦେ ଧର,
ସର୍ବଦା ଅଟଇ ତାହା କଳହର ଘର ।୬୭।

ତୋ ପ୍ରଶଂସା ବାଢ଼େ ଯଦି କେହି ଅଯାଚତେ,
ଜାଣିବୁ ତା ଆଗମନ ଠକିବାକୁ ତୋତେ ।
ମଧୁର ହେଲେ ହେଁ କଥା ନ ଶୁଣିବୁ ତାର,
ସେପରି ଲୋକଙ୍କୁ ଦୂରୁଁ କରିବୁ ଜୁହାର ।୬୮।

ନ କହିବୁ କେବେ ବାବୁ ଲଗା ମୋଟା କଥା,
ଘରେ, ପୁରେ କଳି ତହୁଁ ଉପୁଜେ ସର୍ବଥା ।
ବିବେକୀ ଯେ ତା ବଚନ ଅଟଇ ସଂଯତ,
ମନିଷ ! ପାଳିବୁ ମନେ ରଖି ଏଇବ୍ରତ ।୬୯।

କଦାପି ଅତିଥି ଯେବେ ପ୍ରବେଶିବେ ଘରେ,
ପିଢ଼ା ପାଣି ଆଣିଦେବୁ ତାହାଙ୍କୁ ଆଦରେ ।
ଜନନୀକୁ ନମିବୁ କହି କୋମଳ ବଚନ,
ମନେରଖ ବାବୁ ଏହା ଗୃହସ୍ଥ ବିଧାନ ।୭୦।

କୂଅଁ ବେଙ୍ଗ ସମ ବାବୁ ନ ବସିବୁ ଘରେ,
ପରିଜ୍ଞାନ ହୁଏ ବୃଦ୍ଧି ଦେଶ ଭ୍ରମଣିଲେ ।
ବଢ଼ଇ ସାହସ, ଦୂର ହୋଇଯାଏ ଭୟ,
ମନେରଖ ବାବୁ ଏହା ଅଟଇ ନିଶ୍ଚୟ ।୭୧।

ଅଳ୍ପ ଅଳ୍ପ କରି ଉଇ ରଚେ ତାର ଘର,
ଅସଂଖ୍ୟ ଜଳ ବିନ୍ଦୁର ଘର ଏ ସାଗର ।

ଅଳସ ହେଲେ ହେଁ କିଛି କରିବୁ ସଞ୍ଚୟ,
ବୁଢ଼ାକାଳେ କାର୍ଯ୍ୟ ତାକୁ ଆସିବ ନିଶ୍ଚୟ ।୭୨।
ସତସଙ୍ଗ କା ଳ କାଟିଲେ ହୁଏ ପ୍ରଶଂସିତ ।
ମନେ ରଖିବୁ କୁସଙ୍ଗ ନୁହେ କେବେ ହିତ ।
ଦୁଷ୍ଟ ପିଲା ସଙ୍ଗେ ସାଙ୍ଗ ନହେବୁ କୁମର,
ସବୁବେଳେ ବାବୁ ତାହା ବିପଦର ଘର ।୭୩।

ଯତ୍ନ କଲେ ରତ୍ନ ମିଳେ ଯାହାଗଲେ ଯାଉ,
ଚରିତ୍ର ହଜିଲେ ଥରେ ନ ମିଳଇ ଆଉ ।
ଲଭଇ ଚରିତ୍ରବନ୍ତ ଲକ୍ଷ୍ମୀ ଆଲିଙ୍ଗନ,
ମନେ ରଖି ଥିବୁ ଏହା ପଣ୍ଡିତ ବଚନ ।୭୪।

ତୈଳ, ଗଧ ପାଦ ଧୂଳି ମାର୍ଜନର ରଜ,
ଦେହରେ ବାଜିଲେ ଲୁପ୍ତ ହୁଏ ତେଜ ଓଜ ।
ଗୋ-ଧୂଳି ପଡ଼ିଲେ ଅଙ୍ଗେ କଷ୍ଟ ଯାଏ ନାଶ,
ମିଥ୍ୟା ନୁହେ ମନେ ଏହା ରଖିବୁ ଅବଶ୍ୟ ।୭୫।

ଶୁଣିଛୁ ପୁରାଣେ ବାବୁ ରତ୍ନାକର ଚୋର,
ସତସଙ୍ଗ ବଶୁ ହେଲେ ଋଷିକୁଳ ବର ।
ସାଧୁ ସଙ୍ଗରୁ ଅଧିକ ନାହିଁ କିଛି ଭବେ,
ପାଳିବୁ ଏହା ମନ୍ତ୍ର ନ ପାଶୋର ଲବେ ।୭୬।

ଧନେ କିବା କାର୍ଯ୍ୟ ଗୁଣ ଅଟଇ ମହତ,
ଗୁଣିଙ୍କ ଜନଙ୍କୁ ସଦା ଲୋଡ଼େ ଏ ଜଗତ ।

ବେଶରେ କି ପ୍ରୟୋଜନ ଗୁଣନାହିଁ ଯାର,
ଧିକ୍ ତା ଜନନୀ ଧିକ୍ ଜନମ ତାହାର ।୭୭।
ଖୁଣ ନଥିବା ମାନବ କୋଟିକେ ଗୋଟିଏ,
ବହୁତ ଗୁଣରେ ଅଳ୍ପ ଖୁଣ ଲୁଚିଯାଏ ।
ଗୁଣ ଭଲ ହୁଏ ଗୁଣୀଗଣ ସଂସର୍ଗରେ,
ପବିତ୍ର ହୁଏ ପବିତ୍ର !' ରଖିବୁ ମନରେ ।୭୮।
ଘରଛିଦ୍ର ପର ଆଗେ ନ କହିବୁ କେବେ,
ଯାର ମାତ୍ର ଅପମାନ ହୁଏ ତହିଁ ତେବେ ।
ନ କହିବୁ କାରେ ପରମାଣ ସଞ୍ଚୟର,
କହିଲେ ଆପଦ ଥୁଆ ଜାଣିଥା କୁମର ।୭୯।
ଅକର୍ମଣ୍ୟ ଜନେ ଦାନ କରିବା ବିହିତ,
କର୍ମ କୁଣ୍ଠେ ଦାନ ଦେବା କେବେ ନୁହେ ହିତ ।
ଯା ଦେବୁ ତା ଗୁପ୍ତେ ଦେବୁ ନଜାଣିବେ କେହି,
କି ଲଭ ସେଥିରୁ ନିଜେ ନିଜ ଠେକ କହି ।୮୦।
ପ୍ରକାଶ ପାଇଲେ ମନ୍ତ୍ର କାର୍ଯ୍ୟେ ନ ଆସଇ,
ପାଇଥିଲେ ଅପମାନ ନକହିବୁ କାହିଁ ।
ଶତମୁଖ ହୋଇ ପରେ ହୁଏ କ୍ଲେଶକର,
ଗୂଢ଼ ଏ ନିୟମ ଭଲେ ପାଳିବୁ କୁମର ।୮୧।
କେବେ କେବେ ଆସେ ସୁଖ କେବେ ଅବା ଦୁଃଖ,
ଭୋଗିବାରେ ତାହା କେବେ ନହେବ ବିମୁଖ ।

ସୁଖରେ ନୋହିବ ଭୋଳ ଦୁଃଖରେ ନା ଡର,
ମନେ ରଖ ଏହି ନୀତି ଅଟେ ପଣ୍ଡିତର ।୮୨।
କି ଲୋଡ଼ା ଏକରୁ ବେଶୀ ଜୁମାରୀ ଜୁମରେ,
କଷଣ ଲଭେ ଜନକ ସୁଶିକ୍ଷା ଦାନରେ ।
ସନ୍ତାନ ସନ୍ତତି ଯେବେ ହେବେ ଅଶିକ୍ଷିତ,
ଅନୁତାପାନଳେ ପିତା ହୁଅନ୍ତି ତାପିତ ।୮୩।
ଜଳ ଭୂମି ବାତ ବନ କିରଣ ପଥର,
ଏ ସବୁରେ ସମସ୍ତଙ୍କ ସମ ଅଧିକାର ।
ବିଭୁଙ୍କ ପ୍ରଦତ୍ତ ଏହା ପ୍ରାଣୀଙ୍କ କଲ୍ୟାଣେ,
ଅଧୀକାରେ କାହିଁ ବେଶୀ ରଖିଥିବ ଜଣେ ।୮୪।
ରହନ୍ତୁ ଯେଉଁ ନିୟମ ଗମନା ଗମନେ,
ମନେରଖି ସହରେ ତା ପାଳିବୁ ଯତନେ ।
ବାମେ ଯିବୁ, ଶୃଙ୍ଗାଟକେ ଦେଲେ ତୁ ନଜର,
ନ ଘଟିବ ଦୁର୍ଘଟଣା କେବେରେ କୁମର ।୮୫।
ବାଟେ ଗୁଳ୍ମ ଗୁଳ୍ମ କେବେ ନକର ଆହାର,
ନ ଗାଇବୁ ଗୀତ ତାହା ଲୋକେ ଅସୁନ୍ଦର ।
ଜହ୍ନ ଆଲୁଅରେ କେବେ ନ ପଢ଼ିବୁ ମାଠ,
ଆଗେ ନରହ କୁଠାରେ କାଟୁଥିଲେ କାଠ ।୮୬।
ଏକା ହୋଇ କେବେ ନଈ ପାରି ହେବୁ ନାହିଁ,
ବନପଥେ ଏକା ଯିବା କେବେ ନ ଯୋଗାଇ ।

ନ ମିଳୁ ଏକାକୀ ମହୀଁ ନାହିଁ ପରିଚୟ,
କେବେ କେବେ ଘଟିଥାଏ ଆପଦ ନିଶ୍ଚୟ ।୮୭।

ଦୁଷ୍ଟଜନ ଯାବୁ ଜାଏ ଥିଲେ ତୋ ନିକଟରେ,
ସ୍ୱଭାବରୁ ମନ୍ଦଗୁଣ ବୁଝାଇ ତାହାରେ ।
ଦୋଷ ଧରାଗଲେ ତାର ସାହା ହେବୁ ନାହିଁ,
ଏ ନୀତି ପାଳିବୁ ଦୋଷୀ-ସ୍ୱକଲ୍ୟାଣ ପାଇଁ ।୮୮।

ସାମାନ୍ୟ ଅଙ୍କୁଶ, କିନ୍ତୁ ଗଜେ କରେ ବଶ,
ଲଗୁଡ଼ ଆଘାତେ ଆଣେ ପଶୁଙ୍କୁ ଅବଶ୍ୟ ।
ଦଣ୍ଡ ଭୋଗୀ ସ୍ୱଚରିତ୍ର ଯଦି ଲଭେ ଦୋଷୀ,
ତା ଉଦ୍ଧାରେ ଯାବୁ କେବେ ନୋହିବୁ ଆଳସୀ ।୮୯।

ଚାକର ରଖିବା ଆଗୁଁ ଜାଣିଥା କୁମର,
ଗୋପନେ ସନ୍ଧାନ ନେବୁ ଗୁଣ ଦୁର୍ଗୁଣର ।
ଭୃତ୍ୟପରେ ଘର ଭାର କଦାପି ନ ଦେବୁ,
ଅନ୍ୟଥା ପଛରେ ଅନୁତାପେ ଘାରିହେବୁ ।୯୦।

ଆଉସବୁ ନୂଆ ହେଲେ ଦିଶିବ ସୁନ୍ଦର,
ନ କାଢ଼ିବୁ ଘରୁ କେବେ ପୁରୁଣା ଚାକର ।
ହେଲେ ତାହା ପରଛିଦ୍ର ପଦାରେ ରଟିବ,
ମନ ଜାଣି ନୂଆ ଭୃତ୍ୟ ସେବା ନ କରିବ ।୯୧।

ପନ୍ନ ପାଇ ତା ଉତ୍ତର ନ ଦିଏ ଯେ ଗର୍ବେ,
ବାର୍ତ୍ତା ବୁଢ଼ୀ ବୋଲି ତାକୁ ବୋଲନ୍ତି ସରବେ ।
ଦେଇ ପନ୍ନ ନପାଇଲେ ଉତ୍ତରୀତ ହିଲ,
କି ଭାବ ଆସେ ତୋ ହୃଦେ କହ ଶୁ ବନ୍ଧୁର ।୧୨।

ସୁଲକ୍ଷଣୀ ନାରୀ ଯୋଗୁଁ ସୁନା ହୁଏ ଘର,
ଅଲକ୍ଷଣୀ ନାରୀ ଯାର ସରେ ତା ସଂସାର ।
ଶିକ୍ଷିତା ହୋଇଲେ ନାରୀ ନୁହେ ଅଲକ୍ଷଣୀ,
ନାରୀ ଶିକ୍ଷା ପାଇଁ ତେଣୁ ଜାଗ୍ରତ ଧରଣୀ ।୧୩।

ସ୍ୱର୍ଗ ସେହି ଘର ଯହିଁ ନାରୀର ସମ୍ମାନ,
ଉପେକ୍ଷିତା ଯହିଁ ତାକୁ ମଣରେ ଶ୍ମଶାନ ।
ନ ବହିବୁ ଦିନେ ହେଲେ ନାରୀପ୍ରତି ରୋଷ,
ଅନ୍ୟଥା ଉପୁଜେ ତହୁଁ ବାରୁ ଅତି ଦୋଷ ।୧୪।

ନ ପଢ଼ଇ ଜଣା ନାରୀ ରୀତି ସମ୍ପଦରେ,
ମିଳେ କିନ୍ତୁ ପରଚୟ୍ତ ବିଭବ ନାଶରେ ।
ଚିନ୍ତା ସେବ୍ୟା ସାବିତ୍ରୀଙ୍କ ସମ ଶ୍ରେଷ୍ଠା ନାରୀ,
ବିତ୍ତ କ୍ଷୟେ ସୁଖେ ପତି ରହନ୍ତି ଆଦର ।୧୫।

ଚିର ନୁହଇ ଏ ଜୀବ ଦିନେ ନଶ୍ୱିଯିବ,
ଯଶ ଅପଯଶ କିନ୍ତୁ ଜୀବନ୍ତ ରହିବ ।
ହରିଶ୍ଚନ୍ଦ୍ର, ରାମ, କୃଷ୍ଣ ନାହାନ୍ତି ଜଗତେ,
ହୁଏ ପ୍ରଶଂସିତ ତାଙ୍କ କୀର୍ତ୍ତି ବହୁମତେ ।୧୬।

ନୈନ୍ଦଲେ ଭବାଦପ ବନ୍ଧର କୁଠାରେ,
ବୈରାଗ୍ୟ ରୂପ ସୁଜ୍ଞାନ ନର ଲଭ କରେ ।
ତଦଅନ୍ତେ ମୋକ୍ଷପଦ ପ୍ରାପତ ହୁଅଇ,
ଏହ ତତ୍ତ୍ୱ ବକ୍ର ନାଦେ ବେଦ ଉଚ୍ଚାରଇ ।୯୭।

ନିଜର ଶରୀର ଗଣା ହୁଏ ନରକରେ,
ସରଗ ତାହା, ଆସକ୍ତ ନଥାଏ ଯହିଁରେ ।
ଅହିଁସା ବଳରେ ସେହ ସ୍ୱର୍ଗ ହୁଏ ଲଭ,
ହିଂସ୍ରକ ପକ୍ଷରେ ସ୍ୱର୍ଗ ଅଟଇ ଦୁର୍ଲଭ ।୯୮।

ଶ୍ରୀମନ୍ତରେ ଲେଖା ସେହ ସଦା ଯେ ସନ୍ତୁଷ୍ଟ,
ଦରିଦ୍ର ସେ, ଥାଏ ଯାର ବହୁ ଲୋଭେ ଇଷ୍ଟ ।
ଉଦ୍ୟମ ହୀନ ହୋଇଲେ ଜୀଇଁ ଥାଉ ମରେ,
ଆଶା ନାହିଁ ଯାର, ସେହ ଅମୃତେ ବହରେ ।୯୯।

ସବନ୍ଧ ! ସବନ୍ଧ ମନେ ବନ୍ଧୁପଦେ ଧ୍ୟାୟୀ,
କରନ୍ତୋ କର୍ତ୍ତବ୍ୟ ଦେଶ ଦଶ ହିତ ପାଇଁ ।
ହେବଟେ। ଦୁଃଖିନୀ ମାତା ଆନନ୍ଦ ବର୍ଦ୍ଧନ,
ଏ ନୀତ ଶତକ ଭଲେ କଲେ ତୁ ପାଳନ ।୧୦୦।



ସ୍ୱାଧୀନ ପ୍ରେସ୍, ବ୍ରହ୍ମପୁର